# ଶ୍ରୀ ଜଗନ୍ନାଥଙ୍କ ଦରବାରରେ ଦିନେ



ଶ୍ରୀ ଶୋଭାକର ଦାସ ଫତେସିଂହ

# ଶ୍ରୀ ଜଗନ୍ନାଥଙ୍କ ଦରବାରରେ ଦିନେ

*ମା ଅପର୍ଣ୍ଣିଦେଈଙ୍କ ସ୍ମୃତିରେ ......*

ଶ୍ରୀ ଶୋଭାକର ଦାସ ଫତେସିଂହ

# ଶ୍ରୀ ଜଗନ୍ନାଥଙ୍କ ଦରବାରରେ ଦିନେ

*ଲେଖକ :*

**ଶ୍ରୀ ଶୋଭାକର ଦାସ ଫତେସିଂହ**

*ପ୍ରକାଶିକା :*

**ଶ୍ରୀମତୀ ବିଷ୍ଣୁପ୍ରିୟା ଦେବୀ**

ଡି.ଏଲ.ଏ - ୩୨

ବୀରସୁରେନ୍ଦ୍ର ସାଏ ନଗର

ଭୁବନେଶ୍ୱର - ୭୫୧ ୦୦୪

*ପ୍ରକାଶନ :*

ଦୋଳପୂର୍ଣ୍ଣିମା ୧୯୯୭

*ପ୍ରକାଶନ ସହଯୋଗୀ :*

**ଲିପିକା, କମଳେଶ, ସୁଭାଶିଷ**

*ପ୍ରଚ୍ଛଦ :*

**ଶ୍ରୀ ଭୁବନେଶ୍ୱର ମହାପାତ୍ର**

*ମୁଦ୍ରଣ :*

**ଶ୍ରୀନନ୍ଦନ ପ୍ରିଣ୍ଟର୍ସ**

୩୧/ଏ, ଜନପଥ, ୟୁନିଟ୍ - ୩,

ଭୁବନେଶ୍ୱର - ୭୫୧ ୦୦୧

ମୂଲ୍ୟ : ଟ ୭.୦୦ ଙ୍କା (ସାତ ଟଙ୍କା ମାତ୍ର)

# ଶ୍ରୀ ଜଗନ୍ନାଥଙ୍କ ଦରବାରରେ ଦିନେ

ଶ୍ରୀ ଜଗନ୍ନାଥ ଆଜି ଦୁନିଆରେ ଅପରିଚିତ ନୁହନ୍ତି । ଦେଶ, ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସେ ସବୁଠାରେ ପରିଚିତ । ଧର୍ମୀୟ ଭାବନା ନେଇ କିଛି ଲୋକ ମସ୍‌ଗୁଲ ଥିବାବେଳେ ଅଧିକାଧିକ ତାଙ୍କ ସଂସ୍କୃତିର ମହାନତା ମାଜିବାରେ ବ୍ୟସ୍ତ । ବାସ୍ତବ କ୍ଷେତ୍ରରେ ଜଗନ୍ନାଥ କୌଣସି ଧର୍ମର ପ୍ରତୀକ ନୁହେଁ ବରଂ ପୃଥିବୀ ସଂସ୍କୃତିର ବାର୍ତ୍ତାବହ । ତାଙ୍କୁ ରାଜାଧିରାଜ ସମ୍ମାନ ଦିଆଯାଇଛି । ତାଙ୍କ ଭୋଗ ପାଇ ଷାଠିଏ ପଉଟିର ଦୈନିକ ପଢ଼ି ବ୍ୟବସ୍ଥା ହୋଇଛି । ତାଙ୍କ ମନ୍ଦିରକୁ ଶ୍ରୀମନ୍ଦିର, ଦାଣ୍ଡକୁ ବଡ଼ଦାଣ୍ଡ, ତାଙ୍କର ପ୍ରସାଦକୁ ମହାପ୍ରସାଦ କୁହାଯାଇଛି । ଅନ୍ୟପକ୍ଷରେ ଓଡ଼ିଆ ମାତ୍ରକେ ନିଜ ଘର ଭିତରର ମୁରବୀ ବୋଲି ଭାବନ୍ତି । ଦୁଃଖରେ ସୁଖରେ ଜନ୍ମମୃତ୍ୟୁରେ ଭାଗିଦାର ଭାବନ୍ତି । ବାହା ପୁଆଣିରେ ପ୍ରଥମ ନିମନ୍ତ୍ରଣ ତାଙ୍କୁ ଦିଅନ୍ତି, ଜନ୍ମବାସରେ ତାଙ୍କୁ ଦର୍ଶନ କରନ୍ତି, ମରଣ ସମୟରେ ତାଙ୍କ ପ୍ରସାଦକୁ ତୁଣ୍ଡରେ ଧରନ୍ତି ଏବଂ ସ୍ୱର୍ଗଦ୍ୱାର ମଶାଣିରେ ସେମାନଙ୍କର ମୃତାହ ସଂସ୍କାର ନିମନ୍ତେ ତାଙ୍କ ରୋଷଘରୁ ଅଗ୍ନି ଦିଆଯାଏ ।

ଜଗନ୍ନାଥଙ୍କ କଳେବର ଅପୂର୍ଣ୍ଣ ମଧ୍ୟରେ ପୂର୍ଣ୍ଣ । ଅଧିକମାତ୍ରାରେ ସାଙ୍କେତିକ । ପୃଥିବୀର କଳା, ଗୋରା ପୀତବର୍ଣ୍ଣର ମନୁଷ୍ୟଙ୍କ ସମାରୋହ ଘଟିଛି ତିନି ମୂର୍ତ୍ତିରେ । ରଥର ବର୍ଣ୍ଣାଳୀ ମଧ୍ୟ ସାଙ୍କେତିକ, ତାଙ୍କର

ଆନନ୍ଦବଜାର, ପୃଥିବୀର ବୃହତ୍ତମ ହୋଟେଲ । ରାତି ଦିନ, ବେଳ ଅବେଳରେ ଯେତେଲୋକ ଗଲେ ମଧ କେହି ଅଖିଆ ଫେରିବେ ନାହିଁ । 'ନାହିଁ' ଶବ୍ଦ ସତେ ଯେମିତି ସେଠାରେ ନାହିଁ ।

ଜଣେ ସାଧାରଣ ମଣିଷଙ୍କ ଭଳି ତାଙ୍କର ନିତ୍ୟକର୍ମଗୁଡ଼ିକା ସେ ରାଜକୀୟ ଢ଼ଙ୍ଗରେ ଖୋସାମଦ ଭିତରେ ବିଛଣା ଛାଡ଼ନ୍ତି, ମୁହଁ ଧୁଅନ୍ତି, ଗୁହାରି ଶୁଣନ୍ତି, ମଧ୍ୟାହ୍ନ ଭୋଜନ କରନ୍ତି, ବୁଲି ବାହାରନ୍ତି, ଶିକାର କରନ୍ତି, ମଉଜ ମଜଲିସ ନାଚଗୀତ ଉପଭୋଗ କରନ୍ତି, ଫୁଲରସିଆ ଭାବରେ



ତ୍ରିବିକ୍ରମ ବେଶ (କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ)

ବାସ୍ନା ଫୁଲର ଅଲଙ୍କାର ପିନ୍ଧନ୍ତି, ଅତର ଛିଞ୍ଚି ହୁଅନ୍ତି ଏବଂ ମଣିଷଙ୍କ ଭଳି ଖଟରେ ପହୁଡ଼ ଯାନ୍ତି । ସେ ବାରବ୍ରତରେ ଉପବାସ କରନ୍ତି ।

ଅବାଧ୍ୟ ପିଲାଙ୍କ ପରି ଶହେ ଆଠକଳସରେ ଅତି ବେଶୀ ଗାଧୋଇ ଜ୍ୱରରେ ପଡ଼ନ୍ତି । ସାଧାରଣ ମନୁଷ୍ୟଙ୍କ ଜୀବନକାଳ ସରିବା ପରେ ମାଟି

ପିଣ୍ଡ ନଷ୍ଟ ହେଉଥିବା ପରି ତାଙ୍କର ମଧ୍ୟ ଦିନେ ଘଟ ପରିବର୍ତ୍ତନର ଦରକାର ପଡ଼େ । ଦେଖେଇହେବା ଗୁଣ ତାଙ୍କ ଭିତରେ ଏତେ ଭରି ରହିଛି ଯେ ସେ ଦିନକୁ ପାଞ୍ଚଥର ଲୁଗା ବଦଳାଇ, ନିଜର ବଡ଼ ଲୋକୀ ପଣିଆଁ ଦେଖେଇ ହୁଅନ୍ତି । ସାଧାରଣଲୋକଙ୍କ ସହ ମିଶିବା ପାଇଁ ସେ ମନ୍ଦିରରୁ ପଦାକୁ ଆସନ୍ତି । ସମସ୍ତଙ୍କୁ କୋଳେଇ ନେଇ ସମସ୍ତଙ୍କର ମନକୁ ଜୟ କରିବାର ଚେଷ୍ଟା କରନ୍ତି । ଗଣତନ୍ତ୍ର ଶାସନର ପ୍ରତୀକ ହିସାବରେ ପାଞ୍ଚ ବର୍ଷରେ ଥରେ ନୁହେଁ ସେ ପ୍ରତିବର୍ଷ ଶ୍ରୀ ଗୁଣ୍ଡିଚା ଯାତ୍ରା କରି ସର୍ବସାଧାରଣଙ୍କ ଭୋଟ ମାଗିଥାନ୍ତି ।

ସେହି ଜଗନ୍ନାଥ ପ୍ରତ୍ୟହ ଏବଂ ବିଶେଷ ବିଶେଷ ଦିବସରେ କ'ଣ କରନ୍ତି ଆସନ୍ତୁ ତାହା ସ୍ୱଚକ୍ଷୁରେ ଦେଖିବା ପାଇଁ ତାଙ୍କ ମନ୍ଦିର ଭିତରକୁ ସୂର୍ଯ୍ୟୋଦୟର ଯଥେଷ୍ଟ ପୂର୍ବରୁ ଦିନେ ଯିବା ।

**୧. ମୁଦ ଫିଟା**:- ଉଚ୍ଚ ଅଧିକାରୀ ସେବକମାନେ ମନ୍ଦିରର ତାଲାରେ ପୂର୍ବ ରାତିରେ ପଡ଼ିଥିବା ମୁଦ(ସିଲ୍) ପରୀକ୍ଷା କରି ଶ୍ରୀ ଜୀଉମାନଙ୍କର ନିଦ୍ରାଭାଙ୍ଗିବା ପାଇଁ 'ମଣିମା, ମଣିମା' ଡ଼ାକ ମଧ୍ୟରେ ଦ୍ୱାର ଖୋଲିବେ ।

**୨. ମଙ୍ଗଳ ଆଳତି**:- ମୁଦ ଫିଟାଯିବା ପରେ ତିନିଠାକୁରଙ୍କ ନିକଟରେ(ତିନିବାଡ଼ରେ) ପ୍ରଥମେ କର୍ପୁର ଆଳତି ଏବଂ ତାପରେ ପିଠଉବଟା ସହିତ ଏକୋଇଶଟି ଘିଅବତୀ ଆଳତୀ କରାଯିବ ।

**୩. ମଇଲମ**:- ଶ୍ରୀ ଜୀଉମାନଙ୍କ ଶ୍ରୀ ଅଙ୍ଗରୁ ପୂର୍ବରାତିର ବେଶ, ଫୁଲ ଇତ୍ୟାଦି ବାହାର କରି ଦିଆଯାଇ ନୂତନ ବସ୍ତ୍ର ପିନ୍ଧାଇ ଦିଆଯାଏ ।

**୪. ଅବକାଶ**:- ମଣିଷଙ୍କ ଭଳି ଦାନ୍ତଘଷା ଏବଂ ଗାଧୁଆ କାମ । ତିନି ମୂର୍ତ୍ତିଙ୍କ ସମ୍ମୁଖରେ ତିନୋଟି ଦର୍ପଣ ରଖାଯାଇ ସେଥିରେ ପ୍ରତି ଫଳିତ

ପ୍ରତିବିମ୍ବରେ ଦାନ୍ତକାଠି ଛୁଆଁଇବା ପରେ କର୍ପୁର, ଦହି, ଚନ୍ଦନ ଓ ଅଁଳା ମିଶା ଜଳ ଢ଼ଳାଯାଇ ମୁହଁ ଧୋଇବା କାର୍ଯ୍ୟ ସମ୍ପନ୍ନ କରାଯାଏ ।

ଏହାପରେ ଜ୍ୟୋତିଷ ସେବକ ଶ୍ରୀ ଜୀଉମାନଙ୍କୁ ସେହି ଦିନର ତିଥି ବାର, ନକ୍ଷତ୍ର, ଗ୍ରହନକ୍ଷତ୍ର ଚଳନ ବିଷୟରେ ପାଞ୍ଜିପଢ଼ି ସୂଚନା ଦେଇଥାନ୍ତି ।

୫. ମଇଲମ:- ଗାଧୁଆ ପରେ ଲୁଗା ବଦଳା କାର୍ଯ୍ୟ କରାଯାଏ ।



ଅବକାଶ ବେଶ (ପ୍ରତ୍ୟେକ ଦିନ)

୬. ସାହାଣମେଲା:- ସର୍ବସାଧାରଣ ଦର୍ଶନ ଦେବାପାଇଁ ତିନିହେଁ ଏବେ ପ୍ରସ୍ତୁତ । ଦର୍ଶନାର୍ଥୀମାନଙ୍କର ହାରି ଗୁହାରି ଶୁଣିବା ପାଇଁ, ଭଲଲୋକ ମନ୍ଦଲୋକଙ୍କୁ ଦର୍ଶନ ଦେବା ପାଇଁ ଶ୍ରୀ ମନ୍ଦିର ଦ୍ୱାର ଫିଟାଇ ଦିଆଯାଏ । କେବଳ କାର୍ତ୍ତିକ ମାସରେ ଏହି ସମୟରେ ବାଳଧୂପ ନୀତି ହେଉଥିବାରୁ ସାହାଣମେଲା ଦର୍ଶନ ହୁଏ ନାହିଁ ।

୭. ବେଶଲାଗି:- ସାହାଣମେଲା ଦର୍ଶନ ପରେ ଶ୍ରୀ ଜୀଉମାନଙ୍କର ପିନ୍ଧାଲୁଗା ବଦଳାଇ ଦିଆଯାଏ ଏବଂ ସେ ଦିନର ବେଶଲାଗି ହୁଏ, ଭିନ୍ନ ଭିନ୍ନ ମାସ ଭିନ୍ନ ଭିନ୍ନ ଋତୁ ଏବଂ ବିଶେଷ ବିଶେଷ ଉତ୍ସବରେ ଶ୍ରୀ ଜୀଉମାନଙ୍କର ବେଶ ଭିନ୍ନ ଭିନ୍ନ ହୋଇଥାଏ । ଏହି ବେଶ ପାଇଁ ହେଉଥିବା ଖର୍ଚ୍ଚ ଶ୍ରୀ ମନ୍ଦିର ପାଣ୍ଠି ବ୍ୟତୀତ ଅନ୍ୟାନ୍ୟ ମଠ ଓ ଅନୁଷ୍ଠାନମାନେ ବହନ କରିଥାନ୍ତି ।

୮. ରୋଷହୋମ:- ଶ୍ରୀ ମନ୍ଦିରରେ ଶ୍ରୀ ବିଗ୍ରହମାନେ ବେଶ ହେଉଥିବା ସମୟରେ ତେଣେ ରୋଷାଇ ଘରେ ରୋଷହୋମ ଆରମ୍ଭ ହୋଇଯାଏ । ରୋଷହୋମ ପରେ ହୋମାଗ୍ନି ନିଆଯାଇ ଶ୍ରୀ ଜୀଉମାନଙ୍କର ଭୋଗ ଅନ୍ନ ରନ୍ଧା ହେବା ବିଧିହୁଏ ।

୯. ସୂର୍ଯ୍ୟ ପୂଜା:- ଏହାପରେ ସୂର୍ଯ୍ୟଯନ୍ତ୍ର ମନ୍ଦିରରେ ସୂର୍ଯ୍ୟପୂଜା କରାଯାଇଥାଏ ।

୧୦. ଦ୍ୱାରପାଳ ପୂଜା:- ସୂର୍ଯ୍ୟ ପୂଜା ପରେ ଜୟବିଜୟ ଦ୍ୱାର ନିକଟରେ ଦ୍ୱାରପାଳ ପୂଜା କରାଯାଏ ।

୧୧. ବଲ୍ଲଭ ଭୋଗ:- ଗୋପାଳ ବଲ୍ଲଭ ଭୋଗରେ ଶ୍ରୀ ଜୀଉମାନଙ୍କୁ ପାଗଖଇ, ପାଚିଲା କଦଳୀ, ନଡ଼ିଆ କୋରାଖଣ୍ଡ, ଖୁଆମଣ୍ଡା, ଦହି, ମାଖନ, ପଇଡ଼, ପାତିନଡ଼ିଆ ପ୍ରଭୃତି ଲାଗି ହୁଏ । ଜୀଉମାନଙ୍କର ଏହା ଜଳଖିଆ ଖାଇବା ନୀତି । ପୌଷମାସରେ ଏହି ସମୟରେ 'ପହିଲି ଭୋଗ' ହୋଇଥାଏ । ପହିଲିଭୋଗରେ ଖେଚୁଡ଼ି ଲାଗି ହୁଏ । ଏହା ବ୍ୟତୀତ ଦୋଳ ପୂର୍ଣ୍ଣମୀ ଏବଂ ସ୍ନାନ ପୂର୍ଣ୍ଣିମାଦିନ ସକାଳ ଧୂପ ସହିତ ବଲ୍ଲଭ ଭୋଗ ଏକତ୍ର ଲାଗି ହୋଇଥାଏ । 'ଅଣସର' ସମୟରେ ଏହି ଭୋଗ କେବଳ 'ସମର୍ପଣ' କରାଯାଇଥାଏ ।



ସୁନାବେଶ (ଆଷାଢ଼ ଶୁକ୍ଳ ଏକାଦଶୀ)

**୧୨. ମଇଲମ:-** ବଲ୍ଲଭ ଭୋଗ ପରେ ଶ୍ରୀ ଜୀଉମାନଙ୍କର ଲୁଗା ବଦଳା ଯାଇଥାଏ ।

**୧୩. ସକାଳ ଧୂପ:-** ସକାଳ ଧୂପ ପାଇଁ ପଢ଼ିଆରୀ ଭୋଗ ଡ଼ାକିବାକୁ ରୋଷଘରକୁ ଯାଆନ୍ତି । ସୁଆର, ମହାସୁଆର ମୁହଁରେ କନା ଘୋଡ଼େଇ ଭୋଗ ଭାର ବୋହି ଆଣିଥାନ୍ତି । ତା' ପୂର୍ବରୁ ପୂଜାପଣ୍ଡା ଶ୍ରୀବଳଭଦ୍ରଙ୍କ ଠାରୁ ଆରମ୍ଭକରି ଶ୍ରୀସୁଦର୍ଶନଙ୍କ ସମ୍ମୁଖଭାଗ(ବାଡ଼) ପର୍ଯ୍ୟନ୍ତ ମୁରୁଜଦ୍ୱାରା ଚାରିଗୋଟି ଘେର କାଟିଥାନ୍ତି ଏବଂ ଭୋଗ ପଦାର୍ଥ ସେହି ଘେର ଭିତରେ ରଖାଯାଏ । ଶ୍ରୀ ଜଗନ୍ନାଥଙ୍କ ବାଡ଼ର ଗୋଟିଏ କୋଣରେ ମହାଲକ୍ଷ୍ମୀଙ୍କର ପନ୍ତି ରହେ । ମୁରୁଜ ଘେର ମଧ୍ୟରେ ମଠବାଡ଼ି ଏବଂ ଅନ୍ୟାନ୍ୟ ଅଧିକାରୀଙ୍କର ପନ୍ତି ବଢ଼ା ହୋଇଥାଏ । ଚାରିଥାଳିରେ

କୋଠ ଭୋଗ ବଢ଼ା ଯାଇଥାଏ । ଘୋଡ଼ଲାଗି ବେଶ ସମୟ ବ୍ୟତୀତ ପୂଜାପଣ୍ଡାଏ ସିଂହାସନ ଉପରେ ବସି ଷୋଡ଼ଶ ଉପଚାରରେ ପୂଜା କରିଥାନ୍ତି । ବାହାରେ ଘଣ୍ଟାକାହାଳୀ ବାଜୁଥାଏ । ଧୂପ, ଦୀପ ନୈବେଦ୍ୟ କରାହୁଏ । ପରିଚ୍ଛା ରାଜଗୁରୁ ସୁନା ବେତ ବାଡ଼ି ଧରି ଗରୁଡ଼ଙ୍କ ସମ୍ମୁଖରେ ଠିଆ ହୋଇଥାନ୍ତି । ନୃତ୍ୟ, ଗୀତ, ପୁରାଣ ପଠନ ଚାଲିଥାଏ । ପୂଜା ସରିବାପରେ ଭିତରଦ୍ୱାର(ଟେରା) ବନ୍ଦ ହୋଇ ଭୋଗ ହୁଏ । ଭିତର ଭୋଗ ଶେଷ ହେବାପରେ ଭିତର ଦ୍ୱାର(ଟେରା) ଫିଟାଯାଏ ଏବଂ ଜୀଉମାନଙ୍କ ବିଡ଼ିଆ ଅର୍ପଣ କରାଯାଏ । ଏହି ସମୟରେ କର୍ପୁର ଆଳତି ଓ ଏକୋଇଶ ଘିଅବତୀ ଆଳତି ହୁଏ । ନୀତି ଶେଷ ହେଲେ ସୁଆରମାନେ ଭୋଗ ହାଣ୍ଡି ଉଠାଇ ନେଇଥାନ୍ତି ।

**୧୪. ମଇଲମ:-** ସକାଳଧୂପ ଶେଷ ହେବାପରେ ଶ୍ରୀଜୀଉମାନଙ୍କର ଲୁଗା ବଦଳାକାର୍ଯ୍ୟ ହୁଏ ।

**୧୫. ଭଣ୍ଡ:-** ଏହାକୁ ଛତ୍ରଭୋଗ ମଧ କୁହାଯାଏ । ଏହି ଭୋଗ ଭୋଗମଣ୍ଡପରେ ବଢ଼ାହୁଏ । ପୂଜାପଣ୍ଡାମାନେ ପଞ୍ଚ ଉପଚାରରେ ପୂଜା କରି ଏହି ଭୋଗକୁ ଜୀଉମାନଙ୍କୁ ସମର୍ପଣ କରିଥାନ୍ତି । ମଠସୁଆର ଓ ଅନ୍ୟମାନଙ୍କ ବରାଦ ଅନୁସାରେ ଏହି ଭୋଗର ପରିମାଣ କମ୍ ବେଶୀ ହୋଇଥାଏ । ପର୍ବପର୍ବାଣୀ ଦିନ ମଧ୍ୟାହ୍ନ ଧୂପପରେ ଭଣ୍ଡ ଭୋଗ ହୋଇଥାଏ ।

**୧୬. ମଧ୍ୟାହ୍ନଧୂପ:-** ଏଥିରେ ମରିଚ ପାଣି, ଲଡୁ, ପିଠା, ବଢ଼ା, ଆରିଷା ପ୍ରଭୃତି ପିଠାସହ ଅନ୍ନବ୍ୟଞ୍ଜନ, ମନୋହର, ପଣା ପ୍ରଭୃତି ଭୋଗ ପଦାର୍ଥ ଲାଗିହୁଏ । ଷୋଡ଼ଶ ଉପଚାରରେ ପୂଜା ହୋଇ ଭୋଗ ଲାଗିହୁଏ । କିନ୍ତୁ, ଗରୁଡ଼ ପାଖରେ ପରିଚ୍ଛା ରହନ୍ତି ନାହିଁ । ଭୋଗ ସମୟରେ ଘଣ୍ଟାବାଦ୍ୟ ଏବଂ ପୁରାଣପାଠ ଚାଲିଥାଏ । ଆଳତି ହୋଇ ମଧ୍ୟାହ୍ନ ଧୂପ ନୀତି

ସରିବାପରେ ଦକ୍ଷିଣ ଘରେ ଥିବା ବାହାର ଦେବଦେବୀଙ୍କର ବାହାର ଦେଉଳ ଭୋଗ ହୁଏ ।

**୧୭. ମଇଲମ:-** ଭୋଗ ଥୋଇବାସ୍ଥାନ, ପୂଜାସ୍ଥାନ ପରିଷ୍କାର କରାଯିବାପରେ ଠାକୁରମାନଙ୍କର ଲୁଗା ବଦଳାଯାଏ ଏବଂ ନୂତନ ଲୁଗାରେ ବେଶ କରାଯାଏ ।

**୧୮. ମଧ୍ୟାହ୍ନ ପହୁଡ଼:-** ଏହାପରେ ପଲଙ୍କ ବିଜେ କରାଯାଇ ପହୁଡ଼ ଆଳତି କରାହୁଏ । ଜୟବିଜୟ ଦ୍ୱାର ବନ୍ଦ କରାଯାଇ ବଇଠା ଓହ୍ଲାଇ ଦିଆଯାଏ । ଠାକୁରଙ୍କୁ ବିଡ଼ିଆ ଅର୍ପଣ କରାଯାଏ ଏବଂ କଳାହାଟ ଦ୍ୱାରରେ ତାଲା ପଡ଼େ ।



**ନାଗାର୍ଜୁନ ବେଶ (ପଞ୍ଚୁକ ଛଅଦିନ ପଡିଲେ)**

୧୯. ସଂଧ୍ୟା ଆଳତି:- ଶ୍ରୀଜୀଉମାନେ ପଲଙ୍କ ତେଜି ରତ୍ନ ସିଂହାସନରେ ବିଜେ ହେବାପାଇଁ ପ୍ରତିହାରୀ ପ୍ରାର୍ଥନା କରନ୍ତି । ତାପରେ କଳାହାଟ ଦ୍ୱାର ଖୋଲାଯାଏ । ପଲଙ୍କ ଉଠାଇ ନିଆଗଲାପରେ କର୍ପୁର ଆଳତି, ଏକୋଇଶବତୀ ଆଳତି ଏବଂ ସଞ୍ଜାକାଳି ଆଳତି କରାଯାଏ ।

୨୦. ମଇଲମ:- ଜୀଉମାନଙ୍କର ଲୁଗା ବଦଳାଇ ଦିଆଯାଇ ବେଶ କରାଯାଏ । ଏଥିରେ ପ୍ରଧାନତଃ ବିଭିନ୍ନଫୁଲ ଲାଗିଥାଏ ।

୨୧. ସଞ୍ଜଧୂପ:- ଷୋଡ଼ଶ ଉପଚାରରେ ପୂଜାସହ ମଧ୍ୟାହ୍ନଧୂପ ପରି ସଞ୍ଜଧୂପ ନୀତି ସମାହିତ ହୁଏ । ରାଜଗୁରୁ ପରିଛା ଗରୁଡ଼ ନିକଟରେ ରହନ୍ତି ନାହିଁ । ପୂଜା ପରେ କର୍ପୁର ଆଳତି, ଏକୋଇଶବତୀ ଆଳତି ଏବଂ ପିଠାଉ ଆଳତି କରାଯାଏ । ଏହାବାଦେ ଦୁଇଟି ଜୟମଙ୍ଗଳ ଆଳତି କରାଯାଇଥାଏ ।

୨୨. ସାହାଣମେଲା :- ଦର୍ଶନାର୍ଥୀମାନଙ୍କର ହାରିଗୁହାରି ନିକଟରୁ ଶୁଣିବାପାଇଁ ପୁଣି ସର୍ବସାଧାରଣଙ୍କ ପାଇଁ ଦ୍ୱାର ଖୋଲି ଦିଆଯାଏ ।

୨୩. ମଇଲମ:- ଜୀଉମାନଙ୍କର ପିନ୍ଧାଲୁଗା ବାହାର କରିଦେଇ ନୂଆ ଲୁଗା ପିନ୍ଧାଇ ଦିଆଯାଏ । ଏହି ସମୟରେ ଶାଢ଼ୀ ଏବଂ ଖଣ୍ଡୁଆ ଲାଗି ହୁଏ ।

୨୪. ଚନ୍ଦନଲାଗି:- ଶ୍ରୀ ମହାପ୍ରଭୁଙ୍କ ଶ୍ରୀ ଅଙ୍ଗରେ ଚନ୍ଦନ, କସ୍ତୁରୀ, କର୍ପୁର, କେଶର ପ୍ରଭୃତି ସୁଗନ୍ଧିତ ଦ୍ରବ୍ୟ ଲାଗିହୁଏ । ବିଡ଼ିଆ ଅର୍ପଣ କରାହୁଏ ।

୨୫. ବଡ଼ସିଂହାର ବେଶ:- ଏହି ବେଶରେ ଫୁଲର ଅଳଙ୍କାରମାନ

ଲାଗିହୁଏ । ଗୀତଗୋବିନ୍ଦ ଖଣ୍ଡୁଆ ଏବଂ ବାରଲାଗି ପାଟ ଲାଗି ହୋଇ ଶ୍ରୀଜୀଉମାନେ ବଡ଼ ସୁନ୍ଦର ଦେଖାଯାନ୍ତି ।

୨୬. ବଡ଼ସିଂହାର ଭୋଗ:- ଏହି ଭୋଗଲାଗି ମୁରୁଜ କଟାଯିବା ଦରକାର ପଡ଼େ ନାହିଁ । ପଞ୍ଚ ଉପଚାରରେ ପୂଜା କରାଯାଏ । ଧୂପ,



ବଡସିଂହାର ବେଶ (ପ୍ରତ୍ୟେକ ଦିନ)

ଦୀପ ଦେଇ ସାରିବା ପରେ ଭିତର ଦ୍ୱାର(ଟେରା) ବନ୍ଦ ହୁଏ । ବଡ଼ସିଂହାର ଭୋଗରେ ପଖାଳ, ପୋଡ଼ ପିଠା, ଖିରୀ, କଦଳୀ ବଡ଼ା, ସାକରା ଓ କାଞ୍ଜିଭୋଗ ହୋଇଥାଏ ।

୨୭. ପହୁଡ଼:- ତିନୋଟି ରତ୍ନପଲଙ୍କ ତିନି ମୂର୍ତ୍ତିଙ୍କ ସମ୍ମୁଖକୁ ଅଣାଯାଏ । ପଇଡ଼ ସମର୍ପଣ କରାହୁଏ । ବିଡ଼ଇଆ ମଣୋହି ହୁଏ । କର୍ପୂର ଆଳତି ହୁଏ । ଆଳତି ସମୟରେ ମାହାରିନାଚ, ଗାନ, ବୀଣାବାଦନ

ଇତ୍ୟାଦି ଚାଲିଥାଏ । ତାପରେ ଶୟନ ଜୀଉଙ୍କୁ ଡ଼ମ୍ଫରୁ ଉପରେ ବିଜେ ହୋଇ ପଇଡ଼ ମଣୋହି, ବିଡ଼ିଆ ନିଦ୍ରାବତୀ ବନ୍ଦାପନା କରାଯାଏ । ମା ଲକ୍ଷ୍ମୀଙ୍କ ତରଫରୁ ପୁଷ୍ପାଞ୍ଜଳି ପକାଯାଏ । ଶୟନ ଜୀଉଙ୍କୁ ଜୟବିଜୟ ଦ୍ୱାରକୁ ବିଜେ କରାଯାଇ ଶ୍ରୀଜଗନ୍ନାଥଙ୍କ ପଲଙ୍କରେ ଶୟନ କରାଇ ଦିଆଯାଏ । ଛାମୁ ବଇଠା ମୁଠା, ଅଖଣ୍ଡଦୀପ ଓହ୍ଲାଇ ଦିଆଯାଇ "ମଣିମା, ମଣିମା," ଡ଼ାକ ମଧ୍ୟରେ କଳାହାଟ ଦ୍ୱାର ବନ୍ଦ କରାଯାଏ ଏବଂ ଜୟବିଜୟ ଦ୍ୱାରରେ ତାଲା ଦେଇ ମୁଦ(ସିଲ୍) ଦିଆଯାଏ । ଏହାପରେ ମନ୍ଦିର ଶୋଧ କରିବାପାଇଁ ଜଗୁଆଳୀ ଦଳ ମନ୍ଦିର ଚାରିପାଖରେ ଖେଦି ଯାଆନ୍ତି ଏବଂ କୌଣସି ଅନଧିକାର ବ୍ୟକ୍ତିଙ୍କୁ ରଖାଇ ନ ଦେଇ ବାହାରକୁ ପଠାଇ ଦିଅନ୍ତି ।

ନିଦରୁ ଉଠିବା ଠାରୁ ପହୁଡ଼ ପର୍ଯ୍ୟନ୍ତ ଏଇ ହେଉଛି ଜଗାବଳିଆଙ୍କର ନିତିଦିନିଆଁ କାର୍ଯ୍ୟକ୍ରମ । ଏହି କାର୍ଯ୍ୟକ୍ରମ ଗୁଡ଼ିକରେ ବିଧାନ ଅପେକ୍ଷା ନିୟମାନୁବର୍ତ୍ତିତା ଉପରେ ଅଧିକ ଗୁରୁତ୍ୱ ଦିଆଯାଉଥିବାରୁ ଏସବୁକୁ 'ନୀତି' କୁହାଯାଏ । ଏହି ଦୈନନ୍ଦିନ ନୀତି ବିଷୟ ଶ୍ରୀଜଗନ୍ନାଥଙ୍କ ସର୍ବ ପୁରାତନ ଡ଼ାଇରୀ 'ମାଦଳ ପାଞ୍ଜି'ରେ ସବିସ୍ତୃତ ବିବରଣୀ ଲିପିବଦ୍ଧ ହୋଇ ରହିଛି । ଏହି ଦୈନନ୍ଦିନ ନୀତି ବ୍ୟତିରେକେ ବିଶେଷ ବିଶେଷ ଦିନ ଓ ପର୍ବପର୍ବାଣୀ ମାନଙ୍କର ନୈମିତ୍ତିକ ନୀତି ପାଳିତ ହୋଇଥାଏ । ସେ ସମ୍ବନ୍ଧରେ ସଂକ୍ଷିପ୍ତ ବିବରଣୀ ତଳେ ଦିଆଗଲା ।

**(୧) ଗୁରୁବାର ନୀତି:-** ଗୁରୁବାର ଦିନଟି ମହାଲକ୍ଷ୍ମୀଙ୍କର ପ୍ରିୟଦିନ ହୋଇଥିବାରୁ ସବୁ ଗୁରୁବାରଦିନ ସକାଳଧୂପ ସରିଯିବା ପରେ ରତ୍ନ ସିଂହାସନ ଉପରୁ ଶ୍ରୀଦେବୀ(ଲକ୍ଷ୍ମୀ) ଏବଂ ଶ୍ରୀଭୂଦେବୀ(ସରସ୍ୱତୀ) ମାଜଣା ମଣ୍ଡପକୁ ବିଜେ କରନ୍ତି । ମାଜଣା ମଣ୍ଡପରେ ଦହିମାଜଣା, ଭୋଗ, ଆଳତି ଏବଂ ଅକ୍ଷତ ବନ୍ଦାପନା କରାହୁଏ । ଦ୍ୱିପ୍ରହର ଧୂପ ଏବଂ ସଂଧ୍ୟା ଧୂପ ନୀତି ପରେ ମଦନମୋହନ ରତ୍ନସିଂହାସନରେ ବିଜେ ହୁଅନ୍ତି ।



ଗଜଉଦ୍ଧାରଣ ବେଶ (ମାଘ ପୂର୍ଣ୍ଣିମା)

ଶ୍ରୀ ଜଗନ୍ନାଥଙ୍କ ଅଙ୍ଗଲଗା ତୁଳସୀ ଓ ସାଧାମାଳ ମଦନମୋହନ ଏବଂ ମହାଲକ୍ଷ୍ମୀଙ୍କୁ ଲାଗି କରାଯାଏ । ଏହାପରେ ମହାଲକ୍ଷ୍ମୀ ଏବଂ ମଦନମୋହନ ରତ୍ନସିଂହାସନରୁ ଓହ୍ଲାଇ ପାଲିଙ୍କି ଦ୍ୱାରା ମହାଲକ୍ଷ୍ମୀଙ୍କ ଜଗମୋହନକୁ ବିଜେ କରନ୍ତି । ସେଠାରେ ପଲଙ୍କ ଉପରେ ବିଜେ ହେବାକୁ 'ଏକାନ୍ତ' କୁହାଯାଏ । ପଲଙ୍କରେ ବିଜେ ସମୟରେ ଭୋଗ, ଆଳତି ଓ ଅକ୍ଷତ ବନ୍ଦାପନା ହୁଏ । ଶେଷରେ ସାତପାହାଚ ବାଟେ ଉଭୟେ ସ୍ୱସ୍ଥାନକୁ ଲେଉଟି ଯାଆନ୍ତି ।

ଗୁରୁବାର ଦିନ ଏକାଦଶୀ ପଡ଼ିଲେ ଏବଂ ଜନ୍ମାଷ୍ଟମୀ ଠାରୁ ଭାଦ୍ର ଶୁକ୍ଳ ଅଷ୍ଟମୀ ପର୍ଯ୍ୟନ୍ତ ଏହି 'ଏକାନ୍ତ' ନୀତି ହୁଏ ନାହିଁ ।

**(୨) ନକ୍ଷତ୍ର ବନ୍ଦାପନା ନୀତି:-** ଶ୍ରୀ ବଳଭଦ୍ରଜୀଉଙ୍କର ଜନ୍ମ ଶ୍ରବଣା ମକର ନକ୍ଷତ୍ର, ଶ୍ରୀ ଜଗନ୍ନାଥଙ୍କର ରୋହିଣୀ ବୃଷ ନକ୍ଷତ୍ର ଓ ଦେବୀ ସୁଭଦ୍ରାଙ୍କର ଜ୍ୟେଷ୍ଠ ବିଛା ନକ୍ଷତ୍ରରେ ନକ୍ଷତ୍ର ବନ୍ଦାପନା ନୀତି ହୁଏ । ଏହି ନୀତି ମଧ୍ୟାହ୍ନଧୂପ ଆଳତି ପରେ ହୋଇଥାଏ । ମଦନମୋହନ ପାଲିଙ୍କିରେ ଶୋଭାଯାତ୍ରା ମଧ୍ୟରେ ବେଢ଼ା ପରିକ୍ରମା କରିଥାନ୍ତି । ଶେଷରେ

ଜୟବିଜୟଦ୍ୱାର ବାହାର ପଟରେ ପୂଜା, ବନ୍ଦାପନା ଏବଂ ଆଳତି ହୁଏ । ତାପରେ ମଦନମୋହନ ଦକ୍ଷିଣଘରକୁ ବିଜେ କରନ୍ତି ।

ଏହି ଦିନ ଗୁଡ଼ିକରେ ଏକାଦଶୀ ପଡ଼ିଲେ ବେଢ଼ାବୁଲା ହୁଏ ନାହିଁ ।

**(୩) ଏକାଦଶୀ ନୀତି:-** ସବୁ ଏକାଦଶୀରେ ସଂଧ୍ୟା ଆଳତି ପରେ ଏହି ନୀତି ହୋଇଥାଏ । ମଧ୍ୟାହ୍ନ ଧୂପ ପରେ 'ମଇଲମ' ସମୟରେ ଶ୍ରୀ ବିଗ୍ରହମାନଙ୍କୁ ଶାଢ଼ୀ, ଖଣ୍ଡୁଆ ଲାଗି କରାଯାଏ । ମଦନମୋହନ ରତ୍ନ ସିଂହାସନରେ ବିଜେ ହୁଅନ୍ତି । ସଂଧ୍ୟା ଆଳତି ପରେ ଚନ୍ଦନଲାଗି ହୁଏ । ମଦନମୋହନ ଶୋଭାଯାତ୍ରାରେ ବେଢ଼ାବୁଲି ଜୟବିଜୟ ଦ୍ୱାରରେ ପହଞ୍ଚିବା ପରେ ପୂଜା, ଭୋଗ, ଆଳତି ଓ ବନ୍ଦାପନା ହୁଏ । ଏହାପରେ ମଦନମୋହନ ଦକ୍ଷିଣଘରକୁ ବିଜେ କରନ୍ତି । କଦଳୀ ବାସୁଙ୍ଗାରେ ନୂଆକନାର ଘିଅବତୀ ବୁଡ଼ାଇ 'ମହାଦୀପ' ଆଳତି ହୁଏ । ଏହି ମହାଦୀପ ଆଳତି ବିମଳାଙ୍କ ମନ୍ଦିର ନିକଟକୁ ନେବା ପରେ ଚୂନରା ସେବକମାନେ ତାହାକୁ ଗ୍ରହଣକରି ଶ୍ରୀମନ୍ଦିର ଉପରକୁ ଉଠନ୍ତି । ନୀଳଚକ୍ରରେ ତୁଳସୀ, ଚନ୍ଦନ ଲାଗି କରିବାପରେ ଚନ୍ଦ୍ରଉଦିଆ ବାଣ ଲଗାନ୍ତି ଏବଂ ମହାଦୀପ ଜାଳିଥାନ୍ତି ।

ଗୁରୁବାର ଦିନ ଏକାଦଶୀ ପଡ଼ିଲେ ସଂଧ୍ୟା ଧୂପ ପରେ ଶ୍ରୀଜଗନ୍ନାଥଙ୍କର ମହାସ୍ନାନ ହୁଏ । ଠାକୁରମାନଙ୍କ ଚନ୍ଦନ ଲାଗି କରାଯାଇ ସ୍ୱତନ୍ତ୍ର ବଡ଼ସିଂହାର ବେଶ ହୁଏ । ଭିତର ଛୁ ମହାପାତ୍ର ଦଣ୍ଡ ଛତ୍ର ଧରନ୍ତି, ମୁଦିରଥ ପ୍ରସାଦ ଏବଂ ଗଦିଫେଟା ଲାଗି କରନ୍ତି । ସୁନା ଆରତି ଦାନିରେ କର୍ପୂର ଆଳତି, ସୁନା ଆଲଟ ଓ ଚାମର କରନ୍ତି । ଦହି ଶାକର ମଣୋହି, ପ୍ରସାଦ ଏବଂ ମଇଲମ କରା ଯାଇଥାଏ ।

ଏକାଦଶୀ ସୋମବାର ଦିନ ପଡ଼ିଥିଲେ 'ଶମ୍ଭୁ ଏକାଦଶୀ' ହୁଏ ।

ଏହିଦିନ ଭଣ୍ଡାର ଲୋକନାଥ ଓ ମଦନମୋହନ ଶ୍ରୀଲୋକନାଥ ମନ୍ଦିରକୁ ଯାତ୍ରା କରନ୍ତି । ସେଠାରେ ଉଭୟଙ୍କ ପନ୍ତିଭୋଗ, ଆଳତି ଏବଂ ବନ୍ଦାପନା କରାଯାଏ । ଉଭୟେ ଏକ ବିମାନରେ ଶ୍ରୀ ମନ୍ଦିରକୁ ଫେରନ୍ତି । ଜୟବିଜୟ ଦ୍ୱାରଠାରେ ପୂଜା ଆଳତି ହୁଏ ଏବଂ ସେମାନେ ସ୍ୱସ୍ଥାନକୁ ବିଜେ କରନ୍ତି ।

ଚତୁଃର୍ମାସ୍ୟା ଏବଂ ଚନ୍ଦନଯାତ୍ରା ସମୟରେ ମଦନମୋହନ ବିଜେ ହୁଅନ୍ତି ନାହିଁ ।



ରାଧା ଦାମୋଦର ବେଶ

(ଆଶ୍ୱିନ ଶୁକ୍ଳ ଏକାଦଶୀ ଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ)

**(୪) ଅମାବାସ୍ୟା ନୀତି:-** ସକାଳଧୂପ ପରେ ପ୍ରତ୍ୟେକ ଅମାବାସ୍ୟା ଦିନ ଶ୍ରୀ ନାରାୟଣ ବିଗ୍ରହ ସିଂହାସନରେ ବିଜେ ହୁଅନ୍ତି ଏବଂ ଶ୍ରୀ ଜଗନ୍ନାଥଙ୍କ ଆଜ୍ଞାମାଳ ନେଇ ସ୍ୱର୍ଗଦ୍ୱାରକୁ ଯାଇଥାନ୍ତି । ସେଠାରେ ସମୁଦ୍ରଜଳ ଲାଗି, ଆଳତି ଏବଂ ବନ୍ଦାପନା କରାଯାଏ । ଶ୍ରୀ ନାରାୟଣ ସେଠାରୁ ଯାଇ ହରଚଣ୍ଡୀ ସାହି ଶ୍ରୀ ଯମେଶ୍ୱର ମନ୍ଦିରରେ ବିଜେ ହୁଅନ୍ତି ।

ପଞ୍ଚାମୃତ ସ୍ନାନ, ପଞ୍ଚ ଉପଚାର ପୂଜା ଭୋଗ ହୁଏ ଏବଂ ତାହାପରେ ଶ୍ରୀ ନାରାୟଣ ବିଗ୍ରହ ଶ୍ରୀମନ୍ଦିରକୁ ଲେଉଟି ଆସନ୍ତି ।

**(୫) କନକ ଲାଗି:-** ବୁଧବାର କିମ୍ବା ଗୁରୁବାର ଦିନ ମଧ୍ୟାହ୍ନପହୁଡ଼ ଆଳତି ପରେ ଦତ୍ତ ମହାପାତ୍ର ସେବକ ତିନି ବିଗ୍ରହଙ୍କର ଶ୍ରୀମୁଖ ଶୃଙ୍ଗାର ବା କନକଲାଗି କରାନ୍ତି । ତାହାପରେ ସେମାନେ ରତ୍ନ ସିଂହାସନରୁ ଓହ୍ଲାଇଗଲେ ପଞ୍ଚାମୃତ ମହାସ୍ନାନ କରାହୁଏ ଏବଂ ତାପରେ ଅନ୍ୟାନ୍ୟ ନୀତି ହୁଏ ।

**(୬) ବେଣ୍ଟ:-** ବସନ୍ତ ପଞ୍ଚମୀ ଦିନ ମଧ୍ୟାହ୍ନ ଧୂପ ପରେ ଏବଂ ଫାଲଗୁନ ମାସର କେତେକ ଦିନରେ ସକାଳ ମଙ୍ଗଳ ଆଳତି ସରିଯିବା ପରେ ଶ୍ରୀ ଜୀଉ 'ଶିକାର' ଖେଳିବା ପାଇଁ ବାହାରନ୍ତି । ତାଙ୍କର ବିଜେ ପ୍ରତିନିଧି ଭାବରେ ଦୋଳଗୋବିନ୍ଦ ଜଗନ୍ନାଥ ବଲ୍ଲଭ ମଠକୁ ବିଜେ କରନ୍ତି । ସେଠାରେ ଭୋଗ, ଆଳତି, ବନ୍ଦାପନା ପରେ ବେଣ୍ଟ ପୋଖରୀକୁ ଯାଆନ୍ତି ଓ ସେଠାରେ ପାଞ୍ଚଟି ପଇଡ଼କୁ ମୃଗ ଜ୍ଞାନକରି ଲେଙ୍କା ସେବକ ଶ୍ରୀ ଜୀଉଙ୍କ ତରଫରୁ ପାଞ୍ଚଟି ଶର ନିକ୍ଷେପ କରିଥାନ୍ତି ।

**(୭) ଚନ୍ଦ୍ରଗ୍ରହଣ ଓ ସୂର୍ଯ୍ୟପରାଗ:-** ଗ୍ରହଣ ସମୟରେ ସମସ୍ତ ପ୍ରକାର ଦେବନୀତି ବନ୍ଦ ରହେ । ଗ୍ରହଣ ମୋକ୍ଷ ପରେ ମହାସ୍ନାନ ହୁଏ ଏବଂ ତାପରେ ରୋଷହୋମ କରାଯାଇ ଅନ୍ୟାନ୍ୟ ନୀତି ଓ ପାକକ୍ରିୟା ଆରମ୍ଭ ହୁଏ ।

**(୮) ଅଶୌଚ ବା ଦୁର୍ଘଟଣା:-** ମନ୍ଦିର ମଧ୍ୟକୁ କେହି ବିଧର୍ମୀ ବ୍ୟକ୍ତି, କୁଷ୍ଠ ରୋଗାକ୍ରାନ୍ତ ବ୍ୟକ୍ତି କିମ୍ବା କୁକୁର ପ୍ରବେଶ କଲେ, ମନ୍ଦିର କିମ୍ବା ତାହାର ହତା ମଧ୍ୟରେ ଶବ, ଅସ୍ଥି ଦେଖାଦେଲେ, ଭୋଗ ସମୟରେ ମଳ, ମୁତ୍ର, ରକ୍ତ ମନ୍ଦିର ମଧ୍ୟରେ ପଡ଼ିଥିବାର ଦେଖାଗଲେ ଶ୍ରୀ

ଙ୍କୀଉମାନଙ୍କର ନୀତି ବନ୍ଦ ହୋଇଯାଇ 'ମହାସ୍ନାନ' କରାଯାଏ । ଜୟବିଜୟ ଦ୍ୱାର ପଡ଼େ । ରତ୍ନ ସିଂହାସନ ପୋଛା ହୁଏ । ରନ୍ଧା ଦ୍ରବ୍ୟ ମାରାହୁଏ । ସେଗୁଡ଼ିକ ପୋତି ଦିଆଯାଏ । ଉପକରଣଗୁଡ଼ିକ ଭଲ ଭାବରେ ଧୂଆଯିବାପରେ ରୋଷ ହୋମ, ସୂର୍ଯ୍ୟପୂଜା ଏବଂ ଦ୍ୱାରପାଳ ପୂଜା କରାଯାଏ । ନୂତନ ଭୋଗ ରନ୍ଧା ଆରମ୍ଭ ହୁଏ ଏବଂ ଅନ୍ୟାନ୍ୟ ନୀତି ହୁଏ ।

## ଶ୍ରୀ ଜଗନ୍ନାଥ କଣ ଖା'ନ୍ତି ?

ଚାରିଧାମରେ ବିଜେ ଚାରି ମହାପ୍ରଭୁଙ୍କର ଚଳଣୀ, ରୁଚି ଓ ବେଶଭୂଷା ଭିନ୍ନ ଭିନ୍ନ । ବଦ୍ରିନାଥ ମନ୍ଦିର ଅକ୍ଷୟ ତୃତୀୟା ଠାରୁ ଦିପାବଳୀ ମଧ୍ୟରେ ଖୋଲାରହେ । ବରଫପାତ ଯୋଗୁଁ ବର୍ଷର ଅନ୍ୟମାସ ଗୁଡ଼ିକରେ ମନ୍ଦିର ବନ୍ଦ ଥାଏ । ଏହି ପୀଠର ପୀଠାଧୀଶ ଶ୍ରୀ ବଦ୍ରିନାରାୟଣଙ୍କୁ ଯୋଗର ପ୍ରତୀକ ବୋଲି କୁହାଯାଏ । ଶାନ୍ତ ହିମାଳୟ କ୍ରୋଡ଼ ଯୋଗଧ୍ୟାନ ନିମିତ୍ତ ପ୍ରଶସ୍ତକ୍ଷେତ୍ର ଶୁଖିଲା ନଡ଼ିଆ, ଆଖରୋଟ, ବାଦାମ, ପେସ୍ତା ଇତ୍ୟାଦି ଶୁଖିଲାଫଳ ଭୋଗ ରୂପେ ଅର୍ପିତ ହୋଇଥାଏ ।

ଦ୍ୱାରକାଧିପତି ଶ୍ରୀକୃଷ୍ଣଙ୍କ ନିବାସ ଭେଟଦ୍ୱାରକା ନିକଟରେ ସମୁଦ୍ର ଗର୍ଭରେ ଅବସ୍ଥିତ । ଦ୍ୱାରକାପୁରୀରେ ତାଙ୍କର ରାଜଧାନୀ । ଶ୍ରୀକୃଷ୍ଣ ହେଉଛନ୍ତି ପ୍ରେମର ନିଦର୍ଶନ । ତାଙ୍କ ହୃଦୟ ପ୍ରେମବନ୍ୟାରେ ସଦା ଉବୁଟୁବୁ । ତାଙ୍କର ଅତିଶ୍ରଦ୍ଧାର ଭୋଗ ହେଉଛି ସରଲବଣୀ । ସରଲବଣୀ ଲୋଭରେ ସେ ଗଉଡୁଣୀମାନଙ୍କର ଘରୁ ଚୋରୀ କରିବାକୁ ମଧ୍ୟ ପଛାଇ ନାହାନ୍ତି ।

ରାମେଶ୍ୱରଧାମର ଶ୍ରୀ ରାମନାଥ ହେଉଛନ୍ତି ତ୍ୟାଗର ଉଦାହରଣ । ଟିକିଏ ଗଙ୍ଗାଜଳ, ପଇଡ଼ପାଣି କିମ୍ବା ନଡ଼ିଆପାଣି ତାଙ୍କ ମୁଣ୍ଡରେ ଢ଼ାଳି

ଦେଲେ ସେ ସନ୍ତୁଷ୍ଟ ଏବଂ ସଙ୍ଗେ ସଙ୍ଗେ ତାଙ୍କର ଆଶୀଷ ଅଜାଡ଼ି ଦେବେ ।

ଅଥଚ, ପୁରୀଧାମରେ ଶ୍ରୀ ଜଗନ୍ନାଥ ହେଉଛନ୍ତି 'ଭୋଗ'ର ପ୍ରତୀକ । ତାଙ୍କର ବାରମାସରେ ତେର ପର୍ବ ଲାଗିଥାଏ । ତାଛଡ଼ା, ତାଙ୍କର ଦୈନନ୍ଦିନ ନୀତିରେ ଛପନ ପ୍ରକାରର ଭୋଗ ଲାଗିହୁଏ । କେଉଁ ଭୋଗ କେତେବେଳେ ଲାଗିବ ତାହା ମଧ୍ୟ ନିର୍ଦ୍ଧାରିତ ହୋଇଛି । ଭୋଗ ଐଶ୍ବର୍ଯ୍ୟ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ପ୍ରକୃତ ସାମ୍ରାଜ୍ୟ ଚାଲିଛି । କେଉଁ ସମୟରେ କେଉଁ ଭୋଗ ଲାଗି ହୋଇଥାଏ ଆସନ୍ତୁ ଦେଖିବା ।

**ଗୋପାଳ ବଲ୍ଲଭ:-** ଶ୍ରୀଜଗନ୍ନାଥଙ୍କର ଅବକାଶ ବା ମୁଖ ପ୍ରକ୍ଷାଳନ ଏବଂ ଗାଧୁଆକାମ ପରେ ଏହି ଭୋଗକୁ ସକାଳର ଜଳଖିଆ



**ବାଙ୍କଚୂଡା ବେଶ** (କାର୍ତ୍ତିକ ଶୁକ୍ଳ ଦ୍ଵାଦଶୀ)

କୁହାଯାଇପାରେ । ଏଥିରେ ଜଗନ୍ନାଥ ବଲ୍ଲଭ, ପାଗଖଇ, ନଡ଼ିଆକୋରା, ପାଚିଲା କଦଳୀ, ଖଣ୍ଡ, ଖୁଆମଣ୍ଡା, ଦହି, ମାଖନ, ପାଟିନଡ଼ିଆ, ପଇଡ଼ ଇତ୍ୟାଦି ଭୋଗ ଲଗାଯାଇଥାଏ ।

ଧନୁମାସରେ ପହିଲି ଭୋଗ ସମୟରେ ଖେଚୁଡ଼ି ଭୋଗ ହୋଇଥାଏ । ମହାଲକ୍ଷ୍ମୀ ଏହି ମାସରେ ବାପଘରକୁ ବୁଲି ଯାଇଥିବାରୁ ମହାପ୍ରଭୁଙ୍କର ମାଉସୀ ଶୀତ ସକାଳୁ ଖେଚୁଡ଼ି ଗଣ୍ଡିଏ ରାନ୍ଧି ଦେଇଥାନ୍ତି ।

**ସକାଳ ଧୂପ:-** ଏଥିରେ କାନିକା, ଡାଟ ଖେଚୁଡ଼ି, ସାଧାଖେଚୁଡ଼ି, ଲୁଖୁରା ଖେଚୁଡ଼ି, ମେଣ୍ଢା ମୁଣ୍ଡିଆ, ବଡ଼କାନ୍ତି, ସାନକାନ୍ତି, ମାଠପୁଳି, ହଂସପୁଳି, ପିଠାପୁଳି, ଝିଲ୍ଲୀ, ଏଣ୍ଡୁରୀ, ଅଦାପାଚିଡ଼ି, ଶାଗ ଓ ଭଜା ଲାଗି ହୁଏ ।

**ଭୋଗମଣ୍ଡପ:-** ଏହି ଛତ୍ରଭୋଗର ସୁଆରମାନେ ଅନ୍ନବ୍ୟଞ୍ଜନ ନିଜର ବରାଦ ମୁତାବକ ଲଗାଇ ଥାଆନ୍ତି ।

**ମଧ୍ୟାହ୍ନ ଧୂପ:-** ମରିଚ ପାଣି, ଲଡୁ, ପିଠା, ବଡ଼ା, ଆରିଷା, ଡ଼ାଲି, ଟଭା ପଖାଳ, ଦହି ପଖାଳ, ମହୁର, ବେସର, ସନ୍ତୁଳା, ରାଇତା, ଶାଗ, ଖଟେଇ, ଦହିବଡ଼ି, ଡ଼ାଲମା, ଓରିଆ ଅନ୍ନ, ବୁନ୍ଦିଆ ଖିରୀ, ବଡ଼ମ୍ବା, ଡାଟ ମନୋହର, ମାଠପୁଳି, ତିପୁରି, ସାକରା, ସୁଜିଖିରୀ, ମୁଗସିଝା, ମନୋହର, ପଣା ଇତ୍ୟାଦି ଲାଗିହୁଏ ।

**ସଂଧ୍ୟା ଧୂପ:-** ମଧ୍ୟାହ୍ନ ଧୂପ ପରି ଅନ୍ନ ବ୍ୟଞ୍ଜନ ଭୋଗ ଲାଗିଥାଏ ।

**ବଡ଼ସିଂହାର ଭୋଗ:-** ଏଥିରେ କଦଳୀବଡ଼ା, ଖିରୀ, ଖଜା, ମଗଜଲଡୁ, ପିଠା, ସାକରା ଏବଂ କାଞ୍ଜିଭୋଗ ଲାଗିଥାଏ ।

# ସେ କଣ ପିନ୍ଧନ୍ତି ?

ଶ୍ରୀ ବିଗ୍ରହ ପ୍ରତ୍ୟେକ ଦିନ ତିନିଥର ବେଶ ହୋଇଥାନ୍ତି ।

୧. *ସାହାଣ ମେଲା* : ସକାଳ ହୋଇଯିବାପରେ ବିଗ୍ରହମାନଙ୍କୁ ଯେଉଁ ବେଶ କରାଯାଏ, ସେଥିରେ ବସ୍ତ୍ର ଏବଂ ଅଳଙ୍କାର ଲାଗି କରାଯାଏ ।

୨. *ସଂଧ୍ୟା ଆଳତି ବେଶ*- ଏଥିରେ ଶ୍ରୀଜୀଉମାନଙ୍କର ପାଟପଟନି ଏବଂ ଫୁଲବେଶ ହୋଇଥାଏ ।

୩. *ବଡ଼ସିଂହାର ବେଶ*- ଏହି ବେଶରେ ବସ୍ତ୍ର, ଅଳଙ୍କାର ଏବଂ ଫୁଲର ବ୍ୟବହାର କରାଯାଇଥାଏ । ଫୁଲରେ ତିଆରି ହୋଇଥିବା ଅଧର, କରପଲ୍ଲବ, ପଦକ, ନାକୁଆସି, ଗୁଣା, ଝୁମ୍ପା, ଚଉସରା, ଚନ୍ଦ୍ରିକା, କୁଣ୍ଡଳ ଇତ୍ୟାଦି ଅଳଙ୍କାରମାନ ଶ୍ରୀ ଜୀଉମାନଙ୍କୁ ପିନ୍ଧାଇ ଦିଆଯାଇଥାଏ ।

ଏହି ଦୈନିକ ବେଶ ବ୍ୟତୀତ ବିଭିନ୍ନ ଋତୁ, ଦିନ ଓ ପର୍ବପର୍ବାଣୀ ମାନଙ୍କର ଶ୍ରୀ ଜୀଉମାନେ ବିଭିନ୍ନ ବେଶରେ ସଜିତ ହୋଇଥାନ୍ତି । ସେହି ବେଶଗୁଡ଼ିକ ମଧ୍ୟରେ ସାଧାବେଶ, ଶୀତଦିନେ ଘୋଡ଼ଲାଗି ବେଶ, ଖରାଦିନ ଜାମାଲାଗି ବେଶ, ଜ୍ୟେଷ୍ଠ ପୂର୍ଣ୍ଣିମାରେ ହାତୀବେଶ, ଅନବସର ଶେଷହେବା ପରେ ନବଯୌବନ ବେଶ, ଅଷାଢ଼ ଶୁକ୍ଳ ଏକାଦଶୀ ଦିନ ରଥ ଉପରେ ରାଜବେଶ, ଶ୍ରାବଣ ଶୁକ୍ଳ ଦଶମୀ ଠାରୁ ଝୁଲଣ ବେଶ, ଜନ୍ମାଷ୍ଟମୀ ପରେ କୃଷ୍ଣ ଦଶମୀରେ ବଣଭୋଜୀ ବେଶ, କୃଷ୍ଣ ଏକାଦଶୀ ଦିନ କାଳୀୟଦଳନ ବେଶ, କୃଷ୍ଣଦ୍ୱାଦଶୀ ଦିନ ପ୍ରଳମ୍ବାସୁର ବଧ ବେଶ, କୃଷ୍ଣ ତ୍ରୟୋଦଶୀରେ କୃଷ୍ଣ ବଳରାମ ବେଶ, ଭାଦ୍ରବ ଶୁକ୍ଳ ଦ୍ୱାଦଶୀରେ ଶ୍ରୀ ବଳିବାମନ ବେଶ, ଆଶ୍ୱିନ ଶୁକ୍ଳ ଏକାଦଶୀ ଠାରୁ କାର୍ତ୍ତିକ ଶୁକ୍ଳ ଦଶମୀ ପର୍ଯ୍ୟନ୍ତ ରାଧାଦାମୋଦର ବେଶ, କାର୍ତ୍ତିକ ଅମାବାସ୍ୟା ପରଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ଶ୍ରୀ ବଳଭଦ୍ର ଜୀଉଙ୍କର ପ୍ରତ୍ୟେକ ସୋମବାର ଦିନ ହରିହରବେଶ,

କାର୍ତ୍ତିକ ଶୁକ୍ଳ ଏକାଦଶୀରେ ଶ୍ରୀ ଜଗନ୍ନାଥଙ୍କର ଲକ୍ଷ୍ମୀନାରାୟଣ ବେଶ, ସେହି ଶୁକ୍ଳଦ୍ୱାଦଶୀରେ ବାମନ ବେଶ, ତ୍ରୟୋଦଶୀ ତିଥିରେ ତ୍ରିବିକ୍ରମ ବେଶ, ଚତୁର୍ଦ୍ଦଶୀ ତିଥିରେ ଲକ୍ଷ୍ମୀନୃସିଂହ ବେଶ ଏବଂ ପୂର୍ଣ୍ଣିମା ଦିନ ରାଜରାଜେଶ୍ୱର ବେଶ ହୋଇଥାଏ ।

କାର୍ତ୍ତିକ ମାସରେ ପଞ୍ଚକ ଛଅଦିନ ପଡ଼ିଲେ ପୂର୍ଣ୍ଣିମା ପୂର୍ବଦିନ ନାଗାର୍ଜୁନ ବେଶ ହୋଇଥାନ୍ତି । ଏହି ବେଶ କ୍ୱଚିତ୍ ପଡୁଥିବାରୁ ବହୁ ଦର୍ଶନଭିଳାଷୀ ଆସିଥାନ୍ତି ।

ମାର୍ଗଶୀର କୃଷ୍ଣ ଚତୁର୍ଦ୍ଦଶୀ, ଅମାବାସ୍ୟା ଏବଂ ତାପରେ ପ୍ରତିପଦା ଦିନ ଶ୍ରୀ ଜଗନ୍ନାଥ ଶ୍ରାଦ୍ଧବେଶ ଧାରଣ କରିଥାନ୍ତି ।

ପୌଷ ପୂର୍ଣ୍ଣିମା ଦିନ ଶ୍ରୀ ବିଗ୍ରହମାନେ ରାଜବେଶ ହୁଅନ୍ତି ।

ମାଘମାସ ଅମାବାସ୍ୟାଠାରୁ ବସନ୍ତପଞ୍ଚମୀ ମଧ୍ୟରେ ଶନିବାର ବା ମଙ୍ଗଳବାରରେ ପଦ୍ମବେଶ ହୋଇଥାଏ ।

ମାଘପୂର୍ଣ୍ଣିମା ଦିନ ଶ୍ରୀ ଜଗନ୍ନାଥଙ୍କର ଗଜଉଦ୍ଧାରଣ ବେଶ କରା ଯାଇଥାଏ ।

ଫାଲ୍‌ଗୁନ ଶୁକ୍ଳ ଦଶମୀ ଏକାଦଶୀ, ଦ୍ୱାଦଶୀ ତ୍ରୟୋଦଶୀ ଏବଂ ପୂର୍ଣ୍ଣିମାରେ ଶ୍ରୀ ଜୀଉ ଚାଚେରୀବେଶ ହୋଇଥାନ୍ତି ।

ଚନ୍ଦନ ଯାତ୍ରା ସମୟରେ ଶ୍ରୀ ବିଗ୍ରହଗଣଙ୍କର ଚନ୍ଦନବେଶ ହୋଇଥାଏ ।

ଠଠଠ